# ନାଗଲ ଚତୁର୍ଥୀ ବ୍ରତ କଥା

[ ନୂତନ ମୁଦ୍ରଣ ]

ପ୍ରକାଶକ—**ଧର୍ମଗ୍ରନ୍ଥ ଷ୍ଟୋର**



ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ—ଶ୍ରୀ ବଦ୍ୟାଧର ସାହୁ
ଅଲଶାବଜାର, କଟକ-୨
ଫୋନ୍ ନଂ-୨୪୭୫୬

ସାବଧାନ !

ମୂଲ୍ୟ ଉପରେ ଷ୍ଟାମ୍ପ ବା ଚିଟ ଲଗାଇବେ ନାହିଁ ।

**ମୂଲ୍ୟ—ଏକଟଙ୍କା ପଚିଶ ପଇସା ମାତ୍ର**

# ନାଗଲ ଚତୁର୍ଥୀ ବ୍ରତ କଥା

—ଃ-*-ଃ—

( ମୁନିବର ବାଣୀ )

ଜୟ ଜୟ ଗଣରାଜ, ଲମ୍ବୋଦର ଚତୁର୍ଭୁଜ, ଜୟ ହେ ଶ୍ରୀନାରାୟଣ, ରମା ରମଣ ହେ । ଜୟ ଚଣ୍ଡିକା ସର୍ବାଣୀ, ଜୟ ଅଷ୍ଟ ନାଗୁଣୀ, ପଦ୍ମ ଚରଣେ ତୁମ୍ଭର, ମୋ ନମସ୍କାର ହେ । କୋଶଳ ନାମ ଦ୍ୱୀପରେ; ଭୂମି ଭାରତ ମଣ୍ଡଳେ, ଅବନ୍ତୀ ନାମେ ନଗର, ତହିଁରେ ଘର ଯେ ବଣିକ ସାଧବ ନାମ, ଧନରେ କେ ନୋହେ ସମ, ଧନେଇ ତା ସାଧବାଣୀ, ତାର ଘରଣୀ ହେ । ସାତପୁଅ ତାର ସାତ ବୋହୂରେ ସେ ଭାଗ୍ୟବନ୍ତ, ଦୁଃଖବେ ସାନବୋହୂକୁ, ଶାଶୂ ତାହାକୁ ଯେ । କ୍ଷଣେ ବେଗି ନ ପାରଇ, ଅଗଣ୍ଡିଯାକ କରଇ, ସବୁ ଲିପି ହାଣ୍ଡି ଧୋଇ; ଛେରା ପକାଇ ଯେ କଂସା ଥାଳ ଗରା ମାଜି, ଅଗଣାରେ ଦଏ ସାଜି, ଏରୂପେ ବେଳ ବୁଡ଼ଇ, ଗାଧୋଇଯାଇ ଯେ । ପାଇଲେ ଯେ କିଛି ଖାଇ, ନୋହିବେ ଉପାସେ ଶୋଇ, ଏ ରୂପେ ଦିନ କଟଇ, ଦୁଃଖରେ ଥାଇଯେ ଏକଦିନେ ଶାଶୂ ପୁଣି, ବୋହୂକୁ ସଙ୍ଗରେ ଘେନ, ନଈକି ଗାଧୋଇ ଗଲେ, ମାଛ ଧଇଲେ ଯେ । ସାତଟି ଗଡ଼ଶା ପାଇ, ସାନବୋହୂକୁ ତା ଦେଇ, ବୋଇଲା ଏ ମାଛ ରାନ୍ଧି ଦେବୁଟି ଆଜ ଯେ ସଭିଙ୍କୁ ଅଇଲେ ପୁଣି, ସାନବୋହୂ ମାଛ ଆଣି, ଚୂଲିରେ ଖୋସିଣଦେଲା, ମନେ ନୋହିଲା ଯେ । ଶାଶୂ କଥା ମନେ ନାହିଁ, ଭାଜିଦେବ ଅବା କାହିଁ, ଏ ରୂପେ କେତେକଦିନେ ଶାଶୁର ମନେ ଯେ ପଡ଼ିଲା ଯହୁଁ ସେ ପୁଣ, ବୋଇଲା ବୋହୂକୁ ଶୁଣ, ସବୁ ମାଛ ତୁ ଖାଇଲୁ, ମୋତେ ନ ଦେଲୁ ଯେ । ଡାଆଣୀ ଡାକୁଣୀ ଝିଅ, ଏ ବୁଦ୍ଧି କାହିଁରେ ଶୁଅ, ନ ଦେଲୁ କହିଲୁ ନାହିଁ ଚୋରିକୁ କାହିଁ ଯେ । ଏତେ ଭରସା ତୋହର, ମୋତେହେଁ ନୋହିଲା ଡର, ଆଜ କି ମୁଁ ତୋତେ ଦେବି, କସ କହିବି ଯେ । ଶାଶୁର

ଶୁଣି ଉତ୍ତର ବୋହୂ, ଚଳଇ ମନଉ, ସ୍ନାନରୁ ମାଛ ଆଣିଲା ଘରରେ, ଦେଲା ଯେ । ବୋଲେ ସବୁ ଦେଖ ଏଠି, ଗୃହ୍ଣା ଏ ବୋଲଣ ଏଠି, ମାଛକୁ ଖାଇଛୁ କାହିଁ, ମନେ ମୋ ନାହିଁ ଯେ ସ୍ନାନରେ ଖୋସିଲି ଯହୁଁ, ମନେ ନ ପଡ଼ିଲା ତହୁଁ, ଶାଶୂ ପୁଣି ମା * ସଢ଼, ଦେଲାକ ପେଡ଼ ହେ । ଦେଖିଲା ସାଳଟି ନାଗ, ପଳାଇଲେ ଡଗ ଡଗ, ତାର ଯେ ଈଶାନ୍ୟ କୋଣେ ରହିଲେ ପଶି ଯେ । ଶାଶୂ ଯେ ତାହା ଦେଖିଲା, ଭାଟକା ହୋଇ ରହିଲା ଏମନ୍ତ ଏ କଥା ଶୁଣି, ଯା ହେଲା ପୁଣ ଯେ । ସାନବୋହୂ ତା ଜାଣିଲା ଈଶାନ୍ୟ କୋଣକୁ ଗଲା, ସେ ନାଗ ପିଲାଙ୍କୁ ଦେଖି, ଯତନେ ରଖି ଯେ । ଖିଆଣ ରାନ୍ଧିଲବେଳେ ମିଶାଇ ଦୁଧକ୍ଷୀରଜଳେ, ଖାଇବାକୁ ଦେଲା ଯହୁଁ ବଢ଼ିଲେ ତହୁଁ ଯେ । ବଳଲ ପାଇଣ ତାଙ୍କୁ, ନ କହି କଟୁ କାହାକୁ ଦୁଙ୍କାରେ ନେଇ ଛାଡ଼ିଲା ଆନନ୍ଦ ହେଲା ଯେ । ତହୁଁ ସାତ ନାଗ ଗଲେ, ପାତାଳ ପୁରେ ପଶିଲେ, ନାଗୁଣୀ ମା'ଙ୍କୁ ଯାଇ କହିଲେ ତହିଁ ଯେ । ଆମ୍ଭେ ଯେ ମର୍ତ୍ତ୍ୟକୁ ଗଲୁ, ମାଛ ରୂପେ ଖେଳୁଥିଲୁ ଆମ୍ଭଙ୍କୁ ଯେ ସାଧବାଣୀ ଧଇଲା ପୁଣି ଯେ । ସାନବୋହୂ ହାତେ ଗଲୁ, ବେଲୁଟି ବୋଇଲା ଆଜ, ସ୍ନାନରେ ଖୋସିଲା ଶୁଣି ତ ବୋହୂ ପୁଣି ଯେ । ମନେ ତା' ନୋହିଲା ଯହୁଁ, ଶାଶୂ ଗାଳିଦେଲା ତହୁଁ, ବୋଇଲା ମାଛ ଖାଇଲୁ ମୋତେ ନ ଦେଲୁ ଯେ । ତା ବୋହୂ କହେଇ ପୁଣି, ମାଛ ଦେଲା ତତକ୍ଷଣି, ଶାଶୂ ଖାଇବାକୁ ପୋଡ଼ି, ପେଡ଼ିଲା ପୁଡ଼ି ଯେ ତହୁଁ ଆମ୍ଭେ ବେଗେ ଚଳୁ, ତାର ଈଶାନ୍ୟେ ଲୁଚିଲ, ଖୋଜିଲେ ପାଇବ କାହୁଁ ଲୁଚିଲୁ ତହୁଁ ଯେ । ସାନବୋହୂ ତାହା ଜାଣି, ଲୁଚିଲୁ ଯହିଁରେ ପୁଣି, ଦୁଧ ସ୍ନାନ ଲବଣ, ଦେଇଲ ପୁଣି ଯେ । ଗଲୁ ପ୍ରାପ୍ତେ କରି ପାଳ, ପୋଷିଲା ଆମ୍ଭଙ୍କୁ ବାଳୀ, ଅତି ବଳନ ହୋଇଲୁ, ଛାଡ଼ିଣ ଦେଲା ଯେ । ଦୁଙ୍କାରେ ଆମ୍ଭଙ୍କୁ ଥୋଇ, ବୋଇଲା ଯାଅରେ ଭାଇ, ଶାଶୂ ମୋ ପୋଡ଼ି ମାରନ୍ତା,

---

* ସଢ଼—ମଢ଼ଆ ସଢ଼େଇ

ପ୍ରାଣ ନ ଥାନ୍ତା ଯେ । ଏମନ୍ତେ ସେ କେତେଦିନ, ଗଲ
ହେ ଶୁଣ ସୁଜନ, ନାଗ ନାଗୁଣୀ ଝୁରିଲେ, ସନ୍ତୋଷ ହେଲେ ଯେ ।
ଏମନ୍ତ ବେଳେ ସାତ ଭାଇ, ମାତାଙ୍କୁ ବନସ୍ତ ହୋଇ, ବୋଇଲେ
ଶୁଣଗୋ ମାତ କନ୍ଦବୁ ସତ ଟଗୋ । ସାଧବ ବୋହୂ, ଅମ୍ଭର,
ଭଉଣୀ ଟିଏ ତୁମ୍ଭର, ଆଣିବୁ ପାତାଳପୁର, କହ ଉତ୍ତର ଯେ ।
ଶାଶୁରେ ସେ ସ୍ତ୍ରୀମାନ, ଆସିବା ତାହାଙ୍କୁ ଦେନ, ଦନାକେତେ
ପାତାଳରେ, ଉଦନ୍ତା ଘରେ ଯେ । ଦେଖାଇ ଅମ୍ଭର ପୁର,
ଘୁଞ୍ଚିନେଣ ତାଙ୍କ ଘର, ଧନ ଅଳଙ୍କାର ଦେଇ, ତୋଷକରାଇ
ଯେ । ବୋଇଲା ନାଗୁଣୀ ମାତ ଆଣି ଯାଅଭାଇ ସାତ, ସଙ୍ଗୋଳ
ଯେନ ଆସିବ ଲକ୍ଷ୍ମୀ ନେଇବ ଯେ । ଶୁଣିଣ ସେ ସାତଭାଇ, ଘୋଡ଼ାକୁ
ସଜ କରାଇ, ଭାଇମାନେ ବାହୋନୀକୁ ଯେନ ମଞ୍ଚକୁ ଯେ । ମିଳିଲେ
ସାଧବପୁରୁ, ବଜାଇ ବାଜା ମହୁରୀ, ଘୋଡ଼ାରେ ସେ ସାତ ଭାଇ,
ବସି ଚଳାଇ ଯେ । ସାଧବ ଆଗରେ ଲୋକେ, କହିଲେ ଯାଇଣ
ଥୋକେ ବୋଇଲେ କେ ଆସେ ବୁଝ, ହୋଇଣ ସଜ ଯେ । ଶୁଣି
ଯେ ପୁଅକୁ ଭାଇ, ବେଗେ ଦେଲା ପଠାଇ, ବୋଇଲା କେ ଆସେ
ପୁଣ ପଞ୍ଚାଶେ ଆଣ ଯେ । ଶୁଣି ପୁଅମାନେ ଗଲେ, ଲୋକଙ୍କୁ ଯାଇ
ପୁଚ୍ଛିଲେ, କେ ବୋଇଲେ ତୁମ୍ଭ ଶଳା, କରି ସଙ୍ଗୋଳା ଯେ । ଶୁଣି
ସେ ପୁଅଙ୍କୁ ସ୍ୱଇ, ବେଗେ ଦେଲେ ପଠାଇ, ସାନ ବୋହୂଙ୍କର
ଭାଇ, ଦେଖିବା ପାଇଁ ଯେ ଦେଉଅଛୁ ନରରୂପୀ, ଚଙ୍କର ଶଳା
ସ୍ୱରୂପୀ, ଘରରେ ପ୍ରବେଶ ହେଲେ, ପାଦ ଧୋଇଲେ ଯେ ! ଦେଖି
ସାଧବ ଜସ୍ତୁକ, ରଖିଲ ସାମଗ୍ରୀଯାକ, ଯେନ ଭୁଞ୍ଜି ସୁଖ ହେଲେ,
ସଙ୍ଗୋଳାଇଲେ ! ଶଳାମାନଙ୍କର ଘର, ଥିବାରୁ ବହୁତ ଦୂର,
ରଖିଲେ ନିଜ ସଦନ, କେତେକଦନ ଯେ ଦନାକେତେ ସୁପ୍ରବନ୍ଧ,
ବହୁତ ସମ୍ମାନପାଇ, ଶାଶୁ ଶ୍ୱଶୁରଙ୍କ ଆଗେ କହିଲେ ବେଗେ ଯେ ।
ବହୁକାଳୁ ଦେଖିନାହୁଁ ରହିପାରିବେ ବା କାହୁଁ, ମାତାଙ୍କ

ବୋଲେ ଅଇଲୁ; ଦେଖା ହୋଇଲୁ ଯେ । ଭଉଣୀଙ୍କୁ ଥରେ ଦେଖୁ ଅମାସ ରହି ଆଣିବୁ, ଦେଖା ଶୁଦ୍ଧା ହୋଇକର ଆସିବ ଫେରବେ ଶୁଣି ସେ ବୋଇଲେ ନେନ, ବେଗେ ଆଣି ଗୁଡ଼ ଦେବ; ବହୁତ ଦୂରକୁ ଯିବ, ତେଜ ନୋହିବେ ଯେ । ସାନବୋହୂ ତାହା ଶୁଣି; ଆନନ୍ଦ ହୋଇଲ ପୁଣି, ଓଳଗି ମେଲାଣି ଆଗେ, ବାହାର ବେଗେ ଯେ । ହାଣ୍ଡୋଳା ଉପରେ ଯାଇ ବସିଲାକ ସୁନ୍ଦରମୂର୍ତ୍ତି, ଖଣ୍ଡିଏ ଦଣ୍ଡ ବେଳରେ, ନେଇଣ ସଜଡ଼େ ଯେ । ଯିଇଲେ ପାତାଳପୁରେ ମାତଙ୍କୁ ଓଳଗି କରି, ପୃଷ୍ଟ ଚିତ୍ତକୁ କଲ୍ୟାଣ କଲେ ଯେ ପୁଣି ସେ । ନାଗ ଆଦ ନାଗ ମାତ, ବେଢ଼ି ହୋଇଲେ ଜଗତ, ସାଧବ ବୋହୂ ଚଲୁରେ, କେବଣ ପରେ ଯେ । ଏମନ୍ତେ ସେ ସାନବୋହୂ, ନାଗମାତା ଆଦ ହୋଇ, ସବୁ ମଣାଇ କହିଲେ, ବିଶ୍ୱାସ ହେଲେ ଯେ ଧର୍ମର ଦୁହିତା ମୋର ଭଉଣୀ ଏ ସାତଙ୍କର; ଅଣିଲୁ, ଏ ନାଗପୁର ଭୟ ନ କର ଯେ । ପ୍ରାଣ ରକ୍ଷା ଯୋଡ଼ି ସ୍ୱାଙ୍କୁ ଗୁଡ଼ ଦେଲୁ ଏଠାକୁ ଏ ଯୋନପିଣ୍ଡୁ ଆସିବୁ ଯେ ଇଚ୍ଛା ନେବୁ ଯେ । ଅଜା ଅଜଗଡ଼ବୁଢ଼ା ମାଟିବୁ ତ୍ରେ ଛେକ ଲେଡ଼ା; ନ କହିବୁ କାହା ଆଗେ କଥା ପ୍ରସଙ୍ଗେ ଯେ । ଏବେ ଯେ ତାଙ୍କ ଚିତ୍ତକୁ ଦେଖାଏ ସବୁ ଘରକୁ; ଏକଘରକୁ ସ୍ୱନ୍ଦିଲ, ପୁଣି ବୋଇଲ ଯେ । ଏ ଘରକୁ ଚିହ୍ନି ଦେଖ ଭ୍ରମେ ନ ଯିବୁଟି ପାଖ, ଅଛି ମନା ଦେଖିବାକୁ, ନର ଲୋକଙ୍କୁ ଯେ । କେତେ ଦିନ ଅନ୍ତେ ବାଳୀ, ମନେ ହୋଇ କୁତୁହଳ, ସେ ଘର ଗୋଟିକୁ ଫେଇ, କେଳକ ସୁନ୍ଦି ଯେ । ସୁନ୍ଦିବା ଦେଖିଣ ନାଗେ, ଗର୍ଜଣ ଉଠିଲେ ବେଗେ, ଫଣାମାନ ଉଚ୍ଚେ ଟେକି, ସୁନ୍ଦିଲେ ଟାକ ଯେ । ସାଧବବୋହୂ ଦେଖିଣ; କବାଟ କିଳିଲ ପୁଣି; ବୋଇଲ ଏ ଘରକଥା ନୁହେ ଅନ୍ୟଥା ଯେ । ମନଦୁଃଖେ ଭଣ୍ଡି ବସି; ନାଗ ନାଗୁଣୀ ଯେ ଆସି ବୋଇଲେ ବମନ ତୋର; କହ ଆଗର ଯେ । ସାଧବ ବୋହୂ ଯେ ବହି; ମନା କଲ ଘରମୁଣ୍ଡି; କବାଟ ଫେଇ ସୁନ୍ଦିଲ ସତ କି ବୋଲି

ଯେ । ଦେଖି ସର୍ପମାନେ ମୋତେ ଗର୍ଜ୍ଜଣ ଉଠିଲେ କେତେ
କ୍ରୋଧରେ ଧାଇଁଲେ ସବୁଁ, ପଳାଇ ଚଳୁଁ ଯେ । କବାଟ ଫେଇ
କଲଲ, ଭିତରେ ଏଥି ବସିଲି, କେଉଁଣ କଥା ଏ ମାତ, କହ ମୋ
ସତ ଯେ ॥ ଏରୂପେ ସେ ନାଗତର୍ଦ୍ଧି, କମ୍ପାଇଁ ଅନ୍ତନ୍ତରଜ, ନାଗୁଣୀ
ବୋଇଲେ ପୁଣ, କନ୍ୟକା ଶୁଣ ଯେ ॥ ଅପ୍ରାଧି ଯେଉଁଣ ଜନ ନାହିଁ
ଦୟା ଧର୍ମ ନାହ, ଈଶ୍ୱରେ ଦୋଷୀ ହୁଅନ୍ତି, ନାସ୍ତିକ ଜାତି ଯେ ।
ତାଙ୍କୁ ବଡଗିଣ ଏବ୍ଧ, ଦଂଶିଣ ଏମାନେ ଗାଇ, ଏଥିକୁ ସେହୁଅନ୍ତନ୍ତ
କାହିଁ ମ ଯାନ୍ତି ଯେ । ସାଧବବୋହୂ ତା ଶୁଣି, ବୋଲେ ତୁମ୍ଭେ
ଠାକୁରାଣୀ ଅପ୍ରାଧ କ୍ଷମା ନ କଲେ କେ ଅବ ଭଲେ ଯେ । ହର୍ତ୍ତା
କର୍ତ୍ତା ତୁମ୍ଭେ ହୋଇ, କ୍ଷମା ନକର କମ୍ପାଇଁ, ନାଗୁଣୀ ବୋଇଲେ
ଶୁଣ; କଥା ଭିଆଣ ଯେ । ନାଗଲ ଚଉଠ ଓଷା ମାସଙ୍କ ଅଛୁ
ଭରସା, ତାହାକୁ ଯେହୁ କରଇ ଆଉ କହଇ ଯେ । ଚତୁର୍ଦ୍ଦଶୀ
ସୋମବାର ନାଗଲ ଚଉଠି ସାର, ଶିବ ପୂଜଇ ଦଣ୍ଡ ନପାଇଯେ ॥
ବୋଇଲ ସାଧବବୋହୂ ନାଗଲ ଚଉଠି ଯେହୁ, ତାହାର ବିଧାନ
କସ ଦେବତା କସ ଯେ ॥ କେଉଁ ମନ୍ତ୍ରେ ପୂଜବ କି ଫଳ ତହିଁ
ପାଇବ, କହ ସେ ବୁଝାଇ ମୋତେ ସଂସାର ହିତେଯେ । ବୋଲନ୍ତି
ନାଗ ନାଗୁଣୀ କନ୍ୟକା ଶୁଣ ଦୁଲଣୀ, କାର୍ତ୍ତିକ ଶୁକ୍ଳପକ୍ଷେ ଚତୁର୍ଥୀ
ପକ୍ଷେ ଯେ ॥ ନାଗଲଚତୁର୍ଥୀ ପୁଣ ବୋଲିକଣ୍ଡ ଏବ୍ଧନାମ, ବୁଝ ଯେ
ସକାଳୁ ସ୍ନାନ କରି ବହନ ଯେ । ତା ନିତ୍ୟ କର୍ମ ସାରିବ, ପୂଜା
ବିଧି ଭିଆଇବ ବେଳ ବଣଦଣ୍ଡ ଠାଇଁ ସ୍ଥାନକୁ ଯାଇ ଯେ । ସୁବର୍ଣ୍ଣ
ତୈଳ ଅର୍ଚ୍ଚନା, ସାଦଶୀ ଯେ ଗନ୍ଧପୁଲ, ସେନ ଅଙ୍ଗ ପଖାଳିବ
ସବୁକୁ ପିନ୍ଧ ଯେ । ପାଟ ଦା ଚନ୍ଦନ ହେଉ, ଅମ୍ଲାନ ବସନ୍ତସେହୁ
ପିନ୍ଧିଣ ବେଳବ କାନ୍ତ, ସିନ୍ଦୂର କୋଳି ଯେ । ନାଗମାନେ ଅଳ-
ଙ୍କାର, ଆଭରଣ ଯେ ଯାହାର ପିନ୍ଧି ଶିବ ଦରଶନ ପିବେ ବହନ
ଯେ । ତହୁଁ ଆସି ତତକାଳେ, ବସିବେ ତହିଁସ ମୂଳେ ବାଲି

ଅଙ୍କୁରେ ଗମ୍ଭୀର ପୋଖରୀ ଯେ । ତହିଁରେ ଜଳ ପୂରାଇ ସୁଗନ୍ଧ ଫୁଲ ପକାଇ, ତାଙ୍କୁ ଯେ ପଞ୍ଚ ଅଙ୍କୁର ଘୃତ ମଣ୍ଡଳ ଯେ ॥ ଭରି ଯେ ଚନ୍ଦନ ପାଣି, ପିଢଲା କୁସୁମବୃଷ୍ଟି ବୃଷ୍ଟି ଆଉ ଦିନ ଦେବ ଧୂପ ଜାଳିବ ଯେ । ତମ୍ବା ତରୁ ସ୍ୱର ଗଢ଼, ସ୍ୱର ବଟେ ପୋତ ସଞ୍ଜ ଚନ୍ଦ୍ରାତପ ଉପରକୁ ଟାଣିବ ତାଙ୍କୁ ଯେ । ଦୁବ ଘାସ ଫୁଲ ମାଳ, ଝଞ୍ଜିବ ପାଟ ଦୁକୁଳ, ସ୍ୱର୍ଣ୍ଣପଦ ଶୋଭା ଜାଣ କରିବ ପୂର୍ଣ୍ଣ ଯେ ମଣ୍ଡଳ ଉପରେ ନେଇ, ନୟନ ବାସ ପକାଇ ସିଞ୍ଚିବ ଗନ୍ଧ କୁସୁମ ଭରି ସୁଷମ ଯେ ଦୁଙ୍କରୁ ଖଣ୍ଡିଏ ଆଣି ସିଟାଖା କରଣ ପୁଣି, ପାଟ ତା'ପରେ ବେଢ଼ାଇ ଥୋଇବ ନେଇ ଯେ ତମ୍ବା ରୁପା ସୁନା ଦେବ, ଯାହାକୁ ଯାହା ମିଳିବ, ଗଢ଼ାଇ ନାଗ ନାଗୁଣୀ ଶୋଭିତ ଫଣା ଯେ । ପଞ୍ଚ ମୃତ ଜଳନେଇ ତାହାଙ୍କୁ ସ୍ନାନକରାଇ, ବସାଇବ ତୁଙ୍କା ପାଶ ବେଢ଼ାଇ ବାସ ଯେ ଫଣାମାନ ଢାଙ୍କୁଥିବ ନାନା ଫୁଲ ଫଳ ଦେବ, ସିନ୍ଦୁର କଜ୍ଜଳ ଦେଇ ବେଶ କରାଇ ଯେ ଦେବ ବେଲପତ୍ର ତୁଳ, ମନାସିଥିବ ଦୁକୁଳ ପୁଷ୍ପି ଦେବ ଅଁଳା ଓ ଲଭରି ମଞ୍ଜୁଳ ଯେ ଥିଲେ ଦେବ ଅଳଙ୍କାର କର୍ପୂର ଗନ୍ଧ ପଦର ନାନା ଉତ୍ସବ କରିବ, ପୂଜା ବଢ଼ିବ ଯେ ଗୁଣ୍ଡି ପିଠା ଖଜା ସର, ଛେନା ଭାକୁଡ଼ ସାକର, ଗଜା ମୁଆଁ ପଥା ବଡ଼ ଉଖୁଡ଼ା ଥୋଇ ଯେ । ନୂତନ ଚୂଡ଼ା କଦଳୀ, ପାଚିଲା ଫଳ ଯେ ମିଳ ନଡ଼ିଆ ପଇଡ଼ଗୋଳ ବାଢ଼ିବ ଭଲ ହେ । ନଡ଼ିଆ ଅଦା ଲବଙ୍ଗ, ମରୀଚ କ୍ଷୀର ସଂଯୋଗ ଛେନା ମିଶାଇ କଦଳୀ ପିଠଉ ଗୋଳ ଯେ । ପଞ୍ଚୁ ପଞ୍ଚୁପିଏ ହୋଇ, ନାଗୁଣୀଙ୍କ ଆଗେ ଥୋଇ ତହିଁକ ସନ୍ତୋଷ ପୂର୍ଣ୍ଣ ହୃଦୟ ଜାଣ ଯେ ଅଷ୍ଟ ବତ୍ତୀସ ପତ୍ରରେ, ଥୋଇବ ନେଇ ପାଖରେ ପିଠଉ ନାଗନାଗୁଣୀ, ଥୋଇବ ପଣି ଯେ ନାନାବାଦ୍ୟ ବଜାଇବ ସାତବର୍ଣ୍ଣ ଫୁଲ ଦେବ, ସାତଯେ ଦୁବା ଅକ୍ଷତ ବଦଳ ଘସ ଯେ । ଧୂପ ଦୀପ ଯେ ଆଳତି ଚନ୍ଦନ କୁସୁମ ଜାତ, ଏମାନ ସବୁ ଥୋଇବ ଦ୍ୱିଜ

ବହିବ ଯେ ଆସନ ଭୂତ ପିଣ୍ଡିରେ, ପୂଜା ନାନା ଉପଚାରେ ଯେବଣ ମନ୍ତ୍ରକୁ ପୂଜା ହୋଇବ ସଜା ଯେ । ନାଗ ନାଗୁଣୀ ପଞ୍ଚୋଳା, ଅନନ୍ତାଦ୍ୟ ଅଷ୍ଟକୋଳା ନୈବେଦ୍ୟ ସ୍ୱାହା ବୋଲିଣ, ପାଣି ଧରିଣ ଯେ ॥ ଏମନ୍ତ ଛଞ୍ଚାଇଦେବ ନୈବେଦ୍ୟକୁ ସମର୍ପିବ ଦେଇ ଥିବେ ହୁଳହୁଳି ଯେ ବ୍ରତ ପାଳି ଯେ । ଦୁବ୍ବା ଚନ୍ଦନ ଅକ୍ଷତ କୁସୁମ ବଦରି ପତ୍ର, ଦ୍ୱିଜ ଯୋଗ୍ୟ ଦେବ ଶିରେ ପ୍ରଭୁଙ୍କୁ ଯେ । ଆଳତିରେ ବନ୍ଦାଇବ କର୍ପୂର ତାମ୍ବୁଳ ଦେବ, ଚନ୍ଦ୍ର ନଇବେଦ୍ୟ ଦେଇ ପ୍ରଣମ୍ୟ ହୋଇ ଯେ ବ୍ରତୀମାନେ ଏକ ଚିତ୍ତେ, ଶୁଣିବେ ଏ କଥା ଗୀତେ, ଘଟ କ୍ଷୀର ସର ଦେବେ ସୂତ ଚଢ଼ିବେ ଯେ । ସାତଗୋଟି ଘଟ କ୍ଷୀର, ସାତଗୋଟି ଘଟ ସର ଏ କ୍ଷୀର ଜଳଧିରେ ବ୍ରତ ଏ ଘାଟେ ଯେ । ହୁଳହୁଳି ନାଦ ଦେବେ, ନାନା ଉତ୍ସବ କରିବେ ଦୁବ୍ବା ଅକ୍ଷତକୁ ଆଣି ଯୋଡ଼ିବେ ପୁଣି ଯେ ପାଦୁକା ପ୍ରସାଦ ପାଇ ଚକ୍ଷୁ ପଟରେ ଲଗାଇ ନମସ୍କାର ତାଙ୍କୁ ହେବେ, ସୂତ ଚଢ଼ିବେ ଯେ ବୋଲିବେ ହେ ନାଗରାଜ, ଅନନ୍ତ ବିଦଣ୍ଡ ବାସୁକି ହେ ନମସ୍ତେ ଉଦ୍ଧାର ମୋତେ ଯେ । ଆରେ ପୂର୍ଣ୍ଣକୁମ୍ଭ ଥିବ ଚର୍ଣ୍ଣ ନଡ଼ିଆ ଅର୍ପିବ କୁମ୍ଭରେ ଭାଙ୍ଗିବ ତାହା ମନାସି ଯାହା ଯେ ବ୍ରାହ୍ମଣ ଦକ୍ଷିଣା ଦେଇ ତାଠାରୁ କଲ୍ୟାଣ ପାଇଁ ତାଙ୍କୁ ପୂଜା ବିଧି ଦେବ, ମେଲାଣି ଦେବ ଯେ ବ୍ରତର ସାମଗ୍ରୀମାନ ଖାଇବ ଯେ ଯାହା ମନ, ବେଳ ଉମାସ୍ତ ସାରିବ ସେ ଥିବ ଯେ ॥ ଏମନ୍ତେ ଉଷା ପୂଜି ଉତ୍ତମ ଲୋକେ ଯେ ପୁଣି, ମନାସିଲେ ପୁତ୍ର ପାଇ ଆରୋଗ୍ୟ ହୋଇ ଯେ । ଚକ୍ଷୁରେ ରୋଗ ନୁହଁଇ ସର୍ପବାଧା ନ ଲାଗଇ, ପ୍ରତ୍ୟକ୍ଷ କାଣୀ ଦରିଦ୍ରନାଶ ଯେ । ଯେ ଏହି ପୂଜା କରଇ ପାଦୁକା ପ୍ରସାଦ ପାଇ, ମନାସିଲା କଥା ତାର ହୁଏ ସଫଳ ଯେ । ତୁ ପୁଣି ଏ ଉଷା ନେଇ, ମାନବେ ପୂଜା କରଇ ମନାସି ପାଇବ ଫଳ, ହେବ ମଙ୍ଗଳ ଯେ ତୁ ପୁଣି ଏ ଉଷା କର ସବୁ ଯିବ ଦୁଃଖ ତୋର, ସର୍ପବାଧା ନ ଲାଗିବ ଭଲ ହୋଇବ ଯେ ॥

ସାଧବବୋହୂ ତା ଶୁଣି ବୋଇଲା ଶାଶୁଙ୍କୁ ପୁଣି, ତାଙ୍କୁ ଓଷାକରାଇବ
ଘରକୁ ଯିବ ଯେ ରହିଲା ପାଞ୍ଚ ବରଷ ଭୁଲେ ହୋଇଲ ସନ୍ତୋଷ,
ଘରେ କୁଣ୍ଡବନ୍ଧ ପୁଣି ଦେଇ ମେଲାଣି ଯେ । ନାଗୁଣୀ ଏମନ୍ତ ଶୁଣି
ବହୁତେକ ଭାର ଆଣି, ଦେହଯାକ ଅଳଙ୍କାର ପାଟ ସିନ୍ଦୂର ଯେ
ଯେ ବିଧି ପଦାର୍ଥ ଦେଲା ପୁଅକୁ ତାଙ୍କ ବନ୍ଧନ, ବୋଲୁଛି ଝିଅକୁ ନେଅ
ଘୁଞ୍ଚାଇ ଦିଅ ଯେ ଶୁଣିଣ ସେ ସାନଭାଇ, ସକଳ ସାମଗ୍ରୀ ନେଇ
ଝିଅକୁ ପାଲିଙ୍କି ପରେ ବସାଇ ଗଲେ ଯେ । ମିଳିଲେ ସାଧବପୁରେ
ସାଧବାଣୀ ଆନନ୍ଦିତ, ଉଠିକରି ତାଙ୍କ ଦେଖି ସମ୍ମାନନାରେ ଯେ
ରଖି ଦିନାକେତେ ପୁଣି ତାହାଙ୍କୁ ଜଳେ ମେଲାଣି, ସେ ଦୁହିଁ ହରଷ
ହୋଇଲେ ପୁରକୁ ଗଲେ ଯେ । ଏମନ୍ତେ ହେ କେତେ ପୁଣ, ଗଲା
ବର୍ଷକ ଜାଣ ନାଗୁଣୀ ବୋଲେ ଝିଅକୁ ଦେଖୋଇବାକୁ ହେ ।
ଶୁଣି ଭାଇମାନେ ଗଲେ ସକଳ ସାମଗ୍ରୀ ନେଇଲେ ଝିଅକୁ ସେ ସଙ୍ଗୋ-
ଳିଲେ, ଭାସ ହୋଇଲେ ଯେ । କେତେଦିନ ଗଲା ଜାଣ ହୋଇଲା
କାର୍ତ୍ତିକ ପୁଣ, ସେ ବୋହୂ ଶାଶୁଙ୍କୁ କହି ଓଷା କରଇ ଯେ ।
ସାଧବାଣୀ ବୋହୂ ସେହ, ଓଷା କଲା ସେଣ୍ଟ ମାନ ସମସ୍ତେ ତହୁଁ
ଦେଖିଲେ ଓଷା କରିଲେ ଯେ ସାରୁ ଭାଗଲ ଚଉଠି କଲେ
ତଳଣା ଦେଲିଶି ଶଧିମଠେ ଓଷା ସାରି ତା' ସ୍ନାସ କରି ଯେ । ଆର
ଦିନ ପ୍ରାତଃକାଳେ, ଦୁବ୍କା ଫୁଲଡାଳ ଜଳେ ଉତ୍ସବ ସାହାନ କରି
ଘରକୁ ଫେରି ଯେ । ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଇଲେ ଯେ ବିଧି ପାଳନ
କଲେ, ସମସ୍ତେ ଏ ଓଷ ପୁଣ କଲେକ ଜାଣ ଯେ । ମନାସିଲା
ଫଳମାନ ପାଇଲେ ସେ ଯାହା ମନ, ବଡ଼ନଈ ନାଗୁଣୀପୁରେ ବୁଡ଼ା
ବସୁରେ ଯେ । ମନାସି ମାନକ ହୋଇ ଆମ୍ଭର ଝିଅ ବୋଲଇ
କେତେ ଦ୍ରବ୍ୟ ବୋଲିନେଲ, ଉଲ୍ଲାସେ ଗଲା ଯେ । ଏମନ୍ତ ବୋଲି
ସେ ଯାଇ, ସାଧବ ଘରେ ଲୁଟିଲା ପାଞ୍ଚ ପଣ୍ଡୁଅରେ ଥିବ ଆଜ
ହୋଇଥିବ ଯେ । ମରୁ ଏ ସାଧବ ବୋହୂ ଏ କଥା କ ଅବା ହବୁ,

ଏମନ୍ତ ବଚନର ଶବ୍ଦେ ଉଠେ ଗୃହରେ ଯେ ।। ଏମନ୍ତ ସେ ସାଧବାଣୀ ବୋହୂ ସଙ୍ଗେ କଳି ଶୁଣି, କରଣ ବୋଇଲା ଭଲେ ତୋ ଘର ମଲେ ଯେ । ଆମ୍ଭେ ଭାଆଣୀ ନଳଷଣୀ, ଅଳଙ୍କାର ଥିଲୁ ଆଣି ପାଦୁର ନୂପୁର ହେଲେ ଦେଲେ କ ଭଲେ ଯେ ।। ସାନବୋହୂ ବୋଲେ ଭଲେ, ନ ବଣଇ ଯେତେ ଦେଲେ ସାତ ଘର ବଣ୍ଟିବେ କେତେ ସେ ବେବେଯେ ।। ନାଗୁଣୀ ମାତା ମୋହର, ପିତା ରଜା ନାଗଙ୍କର ଅଜା ଅଜଗର ବୁଢ଼ା ଦେବେ, ଯା ଲୋଡ଼ା ଯେ ।। ଏ ମୋ ସବ ଶୁଭେ ଥିବେ, କାଲି ଯେ ନୂପୁର ଦେବ, ବୁଢ଼ା ଯେ ଏହା ଶୁଣିଲା ଲେଉଟିଗଲା ଯେ ।। ଶାଶୂବୋହୂଙ୍କୁ ଡକାଇ, ପୁତ୍ର ନାଣ୍ଟୁ ବସାଇ ମଣାଇଁ ସବୁ କହିଲା ମନେ ଯା ଥିଲା ଯେ ।। ନୂପୁର ପାଦୁକ ପୂର୍ଣ୍ଣ, ଗଡ଼ାଇଣ ବେଗେ ଆଣ, ଦେଇ ଆସନ୍ତୁ ସଙ୍ଗୋଳ, ତା'ଘରେ କାଳି ଯେ ।। ଧର୍ମରେ ଆମ୍ଭର ଝିଅ, ତାହାକୁ ସଙ୍ଗୋଳ ଯାଅ, କାଲି ତା' ଘରକୁ ଗଲା କଳି ଶୁଣିଲୁ ଯେ ।। ଶାଶୂ ବୋହୂଙ୍କର କଳି ନବେଲା ନୂପୁର ବୋଲି, ଝିଅ ଶୁଣି ଅଙ୍ଗ ଯେତେ, ଟେକିଲା କେତେ ଯେ ।। ତା' ଶୁଣି ଶଳଭ ହେଲା, କାର୍ତ୍ତିକ ଅଭ ନ ଗଲା, କହିଲି ଭୂମିର ଆଗେ ସଙ୍ଗୋଳ ବେଗେ ଯେ ।। ହବୁ ଅଳଙ୍କାର କଲି, ନୂପୁର କର୍ମା ନ କଲି ବୋହୂ ନାତି ପୁତ୍ର ଶୁଣି ଆନନ୍ଦ ପୂର୍ଣ୍ଣି ଯେ ।। ନାଗ ନାଗୁଣୀ ବ୍ୟବସ୍ଥା ନାଗଲ ତଉଠି କଥା ଶୁଣି ଏ ଓଷା କରିବେ, ଫଳ ପାଇବେ ଯେ ।। ମର୍ତ୍ତ୍ୟପୁରେ ଓଷା ପୂର୍ଣ୍ଣ, ପ୍ରତ୍ୟକ୍ଷ ବୋଲିଣ ଜାଣ ଋଷିମାନଙ୍କ ବଚନ, ହେଲା ପ୍ରଚାର ହେ ।। ଗୀର ମୁଣ୍ଡବର ବାଣୀ ରଘୁନାଥ ଦାସ ଭଣି ଶଟେକ ଚେପନ ପଦ, ଦୁଃଖ ସମ୍ପଦ ହେ ।। ସମ୍ପୂର୍ଣ୍ଣ ହୋଇଲା ପୂର୍ଣ୍ଣ, ନାଗୁଣୀଙ୍କ ଆଜ୍ଞା ଜାଣ ଏ ଓଷା ଯେତ୍ତ ପାଳଇ, ଦୁଃଖ ନ ପାଇ ଯେ ।।

—ସ-ମା-ପ୍ତ—

---

ମୁଦ୍ରଣ : ବିଶ୍ୱବିଦ୍ୟା ପ୍ରେସ, ଅଲିଶାବଜାର, କଟକ-୨

# ବିଜ୍ଞାପନ

ଶ୍ରୀମଦ୍ ଭାଗବତ ଶ୍ରୀକୃଷ୍ଣଙ୍କ ମୁଖ ନିଃସୃତ ବାଣୀହେତୁ ଏହା ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥରୂପେ ପରିଗଣିତ । ଏଣୁ ଏହି ଗ୍ରନ୍ଥ ପ୍ରତି ଘରେ ଏବଂ ଦେବାଦେବୀ ମନ୍ଦିରମାନଙ୍କରେ ପୂଜା ହୋଇଆସୁଛି ତଥା ପାଠ ମଧ୍ୟ ହୋଇଆସୁଛି । କିନ୍ତୁ ଏହି ଭାଗବତ ୧୨ ଖଣ୍ଡ ହେବା ହେତୁ ତହିଁରୁ ସାର ବା ତା'ର ମାହାତ୍ମ୍ୟ ସଂଗ୍ରହ କରିବା ବହୁତ କଷ୍ଟ ସାଧ୍ୟ । ଏଣୁ ଲୋକ ଲୋଚନକୁ ଆଣିବା ନିମିତ୍ତ ମହର୍ଷି ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତ ଶ୍ଳୋକର ଅନୁବାଦ ସହ 'ଭାଗବତ ମାହାତ୍ମ୍ୟ' ପୁସ୍ତକ ଖଣ୍ଡି ପାଠକମାନେ ଉକ୍ତ ତେରଖଣ୍ଡ ଭାଗବତ ବସ୍ତୁର ମାହାତ୍ମ୍ୟ ଅଳ୍ପରେ ଜାଣିପାରିବେ । ଏହା ବ୍ୟତୀତ ଉକ୍ତ ଭାଗବତ ମାହାତ୍ମ୍ୟ ବହିଟି ପାଠକଲେ ସେଥିରୁ ଜାଣିବେ— ଭକ୍ତିଲୋକର ବୃତ୍ତାନ୍ତ, ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ପ୍ରତି କଥିତ ଶ୍ରୀମଦ୍ ଭାଗବତ ମାହାତ୍ମ୍ୟ, ଦେବର୍ଷି ନାରଦଙ୍କ ଭକ୍ତି ସହ ଭେଟ, ଭକ୍ତିର କଷ୍ଟ ନିବୃତ୍ତିପାଇଁ ନାରଦଙ୍କ ଉଦ୍ୟୋଗ, ଗୋକର୍ଣ୍ଣ ଉପାଖ୍ୟାନ, ଧୁନ୍ଧୁକାରୀ ପ୍ରେତ ଶରୀରପ୍ରାପ୍ତ ଓ ତହିଁରୁ ଉଦ୍ଧାର ତଥା ଶ୍ରୀମଦ ଭାଗବତ ସପ୍ତାହ ପାଠର ବିଧି ।

ଏତଦ୍ବ୍ୟତୀତ ବେଦ, ବେଦାନ୍ତ, ଉପନିଷଦ, ଗୀତା, ଶାସ୍ତ୍ର ଓ ବ୍ରତ, ସମସ୍ତ ପ୍ରକାର ପୁରାଣ, ଗଳ୍ପ, ନାଟକ, ପଞ୍ଜିକା, କ୍ୟାଲେଣ୍ଡର ସହ କୋମଳମତି ଶିଶୁମାନଙ୍କ ବିଦ୍ୟାଭ୍ୟାସ ପାଇଁ ବହୁ ପ୍ରକାରର ପୁସ୍ତକ ଶିକ୍ଷାଦାନ ନିମ୍ନ ଠିକଣାରେ ଯୋଗାଯୋଗ କଲେ ସୁବିଧା ଦରରେ ପାଇପାରିବେ ।

ଠିକଣା :
ମେସର୍ସ—ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ—ଶ୍ରୀ ଗଦାଧର ସାହୁ
ଅଲିଶା ବଜାର, କଟକ-୨
ଫୋନ୍ ନଂ-୨୪୭୬